# କବିତା ପଢ଼ିବା
# ପିଲାଏ ଆସ



ବିଜୟଚନ୍ଦ୍ର ପଟ୍ଟନାୟକ

# କବିତା ପଢ଼ିବା
# ପିଲାଏ ଆସ

ଲେଖକ :-

**ବିଜୟଚନ୍ଦ୍ର ପଟ୍ଟନାୟକ**

ପ୍ରକାଶିକା:- ଶ୍ରୀମତୀ ଲକ୍ଷ୍ମୀ ପଟ୍ଟନାୟକ
୨୩୧, ଶହୀଦନଗର
ଭୁବନେଶ୍ୱର - ୭୫୧ ୦୦୭

କବିତା ପଢ଼ିବା ପିଲାଏ ଆସ (କିଶୋର-କବିତା ସଂକଳନ)
କବି : ଶ୍ରୀ ବିଜୟଚନ୍ଦ୍ର ପଟ୍ଟନାୟକ

ପ୍ରକାଶିକା : ଶ୍ରୀମତୀ ଲକ୍ଷ୍ମୀ ପଟ୍ଟନାୟକ
୨୩୧, ଶହୀଦନଗର
ଭୁବନେଶ୍ୱର - ୭୫୧ ୦୦୭

ପ୍ରଥମ ପ୍ରକାଶ : ତା ୧.୪.୧୯୯୮ (ଉତ୍କଳ ଦିବସ)

ମୁଦ୍ରଣ : ପ୍ରିଣ୍ଟୋଗ୍ରାଫିକ୍, ଶହୀଦନଗର
ଭୁବନେଶ୍ୱର - ୭୫୧ ୦୦୭

ମୂଲ୍ୟ : ବାର ଟଙ୍କା

KABITA PADHIBA PILAE ASA
(Collection of Oriya Poems for Children)

Poet : Shri Bijaya Chandra Patnaik
(Son of Late D. K. R. Patnaik)

Publisher : Shrimati Lakshmi Patnaik
Plot No. 231, Saheed Nagar
Bhubaneswar - 751 007

First Edition : 1st April, 1998
Printed at : Printo Graphic, Saheed Nagar
Bhubaneswar - 751 007
Price : Rupees Twelve Only

# ଉତ୍ସର୍ଗ

ମୋର ସ୍ନେହମୟୀ ଜନନୀ

**ଶ୍ରୀମତୀ କନକ ପଟ୍ଟନାୟକଙ୍କ**

ଶ୍ରୀଚରଣତଳେ

*(Dedicated to my Mother*
*Shrimati Kanaka Patnaik,*
*wife of Late D. K. R. Patnaik)*

## ଶ୍ରୀମତୀ କନକଦେବୀଙ୍କ ପରିବାର ବର୍ଗ

| | | |
|---|---|---|
| ସ୍ୱାମୀ | :- | ସ୍ୱର୍ଗତ ଡି. କେ. ଆର୍. ପଟ୍ଟନାୟକ |
| ଜ୍ୟେଷ୍ଠା କନ୍ୟା | :- | ଶ୍ରୀମତୀ ହେମଲତା ପଟ୍ଟନାୟକ |
| ଜ୍ୟେଷ୍ଠ ପୁତ୍ର | :- | ଶ୍ରୀ ବ୍ରଜ ସୁନ୍ଦର ପଟ୍ଟନାୟକ |
| ମଧ୍ୟମ ପୁତ୍ର | :- | ଶ୍ରୀ ବିଜୟଚନ୍ଦ୍ର ପଟ୍ଟନାୟକ |
| ମଧ୍ୟମା କନ୍ୟା | :- | ଶ୍ରୀମତୀ ସ୍ୱର୍ଣ୍ଣଲତା ପଟ୍ଟନାୟକ |
| କନିଷ୍ଠ ପୁତ୍ର | :- | ଶ୍ରୀ ଜଗଦୀଶ୍ୱର ପଟ୍ଟନାୟକ |
| କନିଷ୍ଠା କନ୍ୟା | :- | ଶ୍ରୀମତୀ ପୁଷ୍ପଲତା ପଟ୍ଟନାୟକ |

# ସୂଚୀପତ୍ର

(କିଶୋର-କବିତା ସଂକଳନ)

**(ଏହି ସଂକଳନରେ ଥିବା ପ୍ରଥମ ୧୨ ଗୋଟି କବିତା ବିନା ଯୁକ୍ତାକ୍ଷରରେ ଲେଖାଯାଇଛି ।)**

# ଓଡ଼ିଆ ଆମେ
# ଓଡ଼ିଶା ଆମ ଜନମ ଭୂଇଁ

ଓଡ଼ିଶା ରାଇଜେ ଜନମ ଆମର
ଓଡ଼ିଆ ଆମର ଭାଷା
ଆମେ ତ ଓଡ଼ିଆ - ଜାତି ମହୀତଳେ
ବହି ଥାଉ ଶୁଭ ଆଶା ।
ମହିମାମୟୀ ଏ ଜନମ ଭୂଇଁଟି
ଜଗତେ ଅତୁଳନୀୟା
ଭାବିଲେ ଏହାର କୀରତି କଳାପ
ସୁଖେ ନାଚି ଉଠେ ହିଆ ।
କିଏ ସେ ନିଜରେ ସୁଭଗ ନ ମଣେ
ଜନମି ଏହାର କୋଳେ
ଏହାରି ସେବାରେ ଜୀବନ ଦେବାକୁ
କିଏ ଅବା ନାହିଁ ଲୋଡ଼େ ?
ଦେବଭୂଇଁ ପରା ଓଡ଼ିଶା ଆମର
ଧରାରେ ଧରମ ଧାମ
ସବୁରି ମୁଖରେ ଉଠେ ବାରବାର
କାଳିଆ ଠାକୁର ନାମ ।
ଦିନରାତି ସେତ ବଡ଼ ଦେଉଳରେ
ବିରାଜନ୍ତି ଆମପାଇଁ
ସୁଖସୁବିଧାରେ ବିପଦ ବାଧାରେ
ତାକୁ ରହିଥାଉ ଚାହିଁ ।

ରାଇଜେ କେତେ ଯେ ନଈ ପରବତ
ତୋଟାମାଳ ବିଲ ବନ
ଅଛି କେତେ ଖଣି ଅଛଇ ଦରିଆ
ଦେଖି ହଜିଯାଏ ମନ ।
ନୁହଁଇ କେବଳ ଶୋଭାର ଆଧାର
ଏ ସବୁ ଜୀବନ ଦାତା
ସକଳର ହିତେ ଅତି ଯତନରେ
ଯୋଗାଇ ରଖିଛି ଧାତା ।
ବୀର ଭୂଇଁ ବୋଲି ଓଡ଼ିଶାର ଯଶ
ଇତିହାସେ ଅଛି ଲେଖା
ଭୟରେ ବଇରୀ ଥରି ଉଠୁଥିଲା
ଛୁଇଁବାକୁ ସୀମାରେଖା ।
ଯୁଗେ ଯୁଗେ ଏହି ଭୂଇଁରେ ଜନମି
କେତେ କବି କଳାକାର
ସାଧନାର ବଳେ ଦେଇଗଲେ ଯାହା
ନାହିଁତ ତୁଳନା ତା'ର ।
ଯୁଗ ସାଥେ ସଦା ତାଳ ଦେଇ ଦେଇ
ଆଗେଇ ଚାଲିଛୁ ଆମେ
ଏ ମାଟି ମହିମା ତୋଳି ଧରିଥିବୁ
ବିଶାଳ ଧରଣୀ ଧାମେ ।

(ଦୈନିକ 'ସ୍ୱରାଜ୍ୟ' ଓ 'ଖୋଲାଦ୍ୱାର'ରେ ପ୍ରକାଶିତ)



# କାଳିଆ ଠାକୁର

ଜଗତର ନାଥ କାଳିଆ ଠାକୁର
ବଡ଼ ଦେଉଳରେ କରଇ ବାସ
ଏ ସାରା ଦୁନିଆ ଖେଳଘର ତା'ର
ଚାହିଁଲେ ପଲକେ କରିବ ନାଶ ।
ସିଏ ତ ସବୁରି ଆଶା ଓ ଭରସା
ତାହା ବିନା କିଏ ପାରଇ ଚଳି
କେତେ କେତେ ବେଶ କେତେ ରୂପ ତା'ର
ଲୀଳା ଲଗାଇଛି ଭଳି କି ଭଳି ।
ଭକତଙ୍କୁ ଭୋଳେ ତୋଳିନିଏ କୋଳେ
ବୁଝିପାରେ ହେଲେ ମରମତଳ
ଧରମ କରମ ଯାହାର ଯେପରି
ସେଇ ପରକାରେ ଦିଅଇ ଫଳ ।
ରଥ ଯାତରାର ଶୁଭ ଅବସରେ
ବଡ଼ ଦେଉଳରୁ ବାହାରି ଆସି
ରଥେ ବିରାଜଇ ମହା ମହିମାରେ
ଜଗତ ହିତେ ସେ କରୁଣାରାଶି ।
ଏ ଶୁଭ ଯାତରେ ବିପୁଳ ଜନତା
ରଥପରେ ତାକୁ ଦେଖିବା ପାଇଁ
ଚାକି ରହେ ଖାଲି ସବୁ କଥା ଭୁଲି
ଯେତେ ବାଧା ପଡ଼େ ପଡୁନା କାହିଁ ।

ରଥେ ବିଅଁ ଦେଖି ଭକତର ମନ
ଯାହା ହୋଇଥାଏ କେ ପାରେ କହି
ହରିବୋଲ ଆଉ ହୁଳହୁଳି ନାଦ
ଥରାଇ ଦିଏ ବା ଆକାଶ ମହୀ ।
ଭକତ ଭିଡ଼ଇ ରଥ ଦଉଡ଼ିକୁ
ରଥ ଗଡ଼ି ଚାଲେ ବିଅଁକୁ ଧରି
ସେ ଶୋଭା-ପସରା ଦରଶକ ବୁକେ
ପରମ ପୁଲକ ଦିଅଇ ଭରି ।
ହାତ ପାଦ ପରା ନାହିଁ ସେ ବିଅଁର
ଚକା ନୟନରେ ଅନାଇ ଥାଏ
କେହି ତାର ମାୟା ଭେଦି ନ ପାରଇ
ଆଦି ଶେଷ ତା'ର କେହି ନ ପାଏ ।

(ଦୈନିକ 'ସମୟ' ଓ 'ସ୍ୱରାଜ୍ୟ'ରେ ପ୍ରକାଶିତ)



# ମା

ସେନେହମୟୀ କେ  ଅଛି ଆଉ ସତେ
ହେବ ମୋର ମାଆ ସରି
ବୁକୁତଳେ ତା'ର  ଅତୁଳ ମମତା
ମୋ ଲାଗି ରଖିଛି ଧରି ।
ସୁଖେ ଚଳିବାକୁ  କେତେ ଭଲକଥା
ଗପ ଛଳେ କହେ ହସି
ଖିଆପିଆ ମୋର  ସକଳ ବିଷୟେ
ଭାଳି ହେଉଥାଏ ବସି ।
ମନ ତା' ଅଥୟ  ହୋଇଉଠେ ହାୟ
ମୁହିଁ ଯଦିଯାଏ ରୁଷି
ଅନେକ ଯତନ  କରେ ନାନାମତେ
ରଖିବାକୁ ମୋତେ ଖୁସି ।
ହକାରି ଆଦରେ  ବୁଝାଇଦିଏ ସେ
ଦେଖିଲେ କିଛି ମୋ ଦୋଷ
ମୋହରି କାମରେ  ଲାଗିଥାଏ ଯେବେ
ଭୁଲିଯାଏଭୋକ ଶୋଷ ।
ସଦାବେଳେ ମୋର  ଶୁଭ ମନାସଇ
ଦିଅଁ ଦେବତାରେ ପୂଜି
ଚିରଦିନ ମୁହିଁ  ମାଆ ପାଶେ ଋଣୀ
ପାରିବିନି କେବେ ଶୁଝି ।

ମା'ଆ ଯୋଗୁଁ ସିନା ମରତ ଭୂଇଁରେ
ମିଳଇ ସରଗ ସୁଖ
ସକଳ ବେଦନା ଭୁଲି ହୋଇଯାଏ
ଚାହିଁ ଦେଲେ ତା'ର ମୁଖ ।
ମନେ ଭରିଦିଏ ସାହସ ଶକତି
ଦେଖାଇଦିଏ ସେ ରାହା
କହି କି ହୁଅଇ ଦୁନିଆ ଦୁଆରେ
କେତେ ବଡ଼ ସତେ ମା'ଆ !
ଜୀବନର ପଥେ ସବୁବେଳେ ସେ ତ
ସାହା ଭରସା ମୋ ଲାଗି
ତାହାରି ପୟରେ ମଥାକୁ ନୁଆଁଇ
ଆଶିଷ ନିଅଇ ମାଗି ।

('ସ୍ୱରାଜ୍ୟ'ରେ ପ୍ରକାଶିତ)



# ଟିକି ଚଢ଼େଇ

ଟିକି ଚଢ଼େଇ ରେ ଗାଉ କି ମଧୁରେ
ଡାଳରୁ ଡାଳକୁ ଡେଇଁ
ତୋହ ପରି ଏତେ ହରଷ ମନେ ମୋ
କେହିତ ପାରେନି ଦେଇ ।
ନିଇତି ସକାଳେ ଆମରି ଦୁଆରେ
ବସି କେତେ ଗୀତ ଗାଉ
ଗୀତ ଛଳେ କହୁ "ଉଠ ହେ ସଅଳ
ଶୋଇ ରହ ନାହିଁ ଆଉ ।"
ଆହାର ଖୋଜିବା- ପାଇଁ ବହୁଦୂର
ଉଡ଼ି ଚାଲିଯାଉ ତୁହି
ଯେଣେ ଚାହୁଁ ତେଣେ ଘେନିଯାଏହେଲେ
ତୋର ଟିକି ଡେଣା ଦୁଇ ।
ବେଳ ବୁଡ଼ ବେଳେ ଗୀତ ଗାଇ ଗାଇ
ନୀଳ ଆକାଶର ତଳେ
ଫେରି ଆସୁ ପୁଣି ଆପଣା ନୀଡ଼କୁ
ମିଳି ତୋର ସାଥି ଦଳେ ।
ସୁଖେ ଦିନମାନ କଟୁଥିଲା ପରି
ଜଣାଯାଉ ସିନା ସତେ
ଅନେକ ଆପଦ ଅସୁବିଧା ତୋର
ରହିଛି ଜୀବନ ପଥେ ।

ମୁକତ ଭାବେ ତୁ ଜୀଇଁବାକୁ ଚାହୁଁ
କାହାରେ ନଦେଇ ଧରା
ତୋତେ କୋଳେ ଘେନି କେଡ଼େ ମନୋହର
ଦିଶଇ ଆକାଶ ଧରା ।
ତୋ ରୂପ ଗୁଣକୁ ସୁମରଣା କରି
କବିତା ଲେଖଇ କବି
କଳାକାର ତା'ର ତୂଳିକୁ ଚଳାଇ
ଫୁଟାଏ ତୋହର ଛବି ।

( 'ସମୟ'ରେ ପ୍ରକାଶିତ)



# ବୁଝଇ କେବଳ ଜଣେ

ସାରା ଆକାଶକୁ ଘେରି ରହିଥିଲା
ଜଳଭରା କଳାମେଘ
ଶୀତଳ ପବନ ବହି ଚାଲିଥିଲା
ବଢ଼ାଇ ଆପଣା ବେଗ ।
ଆଖି ଦୁଇଟିକୁ ଦିଶୁ ନାହିଁ ବୋଲି
ବାଡ଼ିଟିଏ ହାତେ ଧରି
ଏତିକି ବେଳକୁ ବୁଢ଼ାଟିଏ କାହୁଁ
ଆସିଲା ଶୀତରେ ଥରି ।
କୋତରା ମସିଆ ଥଳୀଟି ତାହାର
ବାହୁତଳେ ଥିଲା ଝୁଲି
ଆହା କି କାତରେ ଭିକ ମାଗୁଥିଲା
ଦୁଆର ଦୁଆର ବୁଲି !
ଆହାର ଅଭାବେ ଯଦିବା ତାହାର
ଶୁଖି ଯାଇଥିଲା ମୁହଁ
ଗଳାରୁ ସହଜେ ଝରି ପଡୁଥିଲା
ଗୀତର ଅବାଧ ସୁଅ ।
ସକାଳ ପହରୁ ଭୋକ ଶୋଷେ ବୁଲି
ଶେଷେ ଆସି ଆମ ସାହି
ଆମରି ଦୁଆରୁ ମାଗି ଚାଲିଗଲା
ଗୀତ ପଦେ ଗାଇ ଗାଇ ।
ଆଖିରେ ସିନା ସେ ଦେଖି ପାରେ ନାହିଁ
ଦେଖି ପାରେ ସବୁ ମନେ
କେହି ତ ବୁଝେନି ବେଦନା ତାହାର
ବୁଝଇ କେବଳ ଜଣେ ।

('ସ୍ୱରାଜ୍ୟ'ରେ ପ୍ରକାଶିତ)

# ଖରାଦିନ

ଖରା ଦିନେ ହୁଏ ଭାରି ଟାଣ ଖରା
ଶୁଖିଯାଏ ନଈ ନାଳ
ଗୀରିଷମ ଦାଉ ସହି ତ ନୁହଁଇ
ଗମ ଗମ ବହେ ଝାଳ ।
ମନ ଚାହେଁ ନାହିଁ ଦିନ ବେଳେ କମା
ଯିବାକୁ ବାହାରେ କାହିଁ
ପାଦ ତଳେ ଜୋତା ମଥା ପରେ ଛତା
ଥିଲେ ସିନା ହୁଏ ଯାଇ ।
ଟିକେ ଖଟିଦେଲେ ଦେହ ଥକିଯାଏ
ଶୋଷରେ ଶୁଖଇ ତୋଟି
ବେଳେ ବେଳେ କାହିଁ ନିଆଁ ଲାଗି ଯାଇ
ଆସଇ ବିପଦ ଘୋଟି ।
ବାଟେ ଯାଉଁ ଯାଉଁ ବାଟୋଇ ଲୋଡ଼ଇ
ଛାଇ ଭରା ଗଛ ତଳ
କେତେ କେତେ ଠାବେ ଜଳର ଅଭାବେ
ଜୀବକୁଳ କଳବଳ ।
ଉଣା ହୋଇ ଆସେ ଗଛ ପତରର
ସବୁଜ ସୁଷମା ଯେତେ
ସୁବାସିତ ଫୁଲ ରସୁଆଳ ଫଳ
ଫୁଟେ ଫଳେ ପୁଣି କେତେ ।

ଟାଣ ଖରା ହେତୁ ତାତି ଯାଏ ସବୁ
ଶୁଖିଯାଏ ଏଇ ଧରା
"ବଡ଼ ନିଠୁର ଏ ଖରାକାଳ" ବୋଲି
କହିଥାଉ ଆମେ ପରା ।
ତତାଇ ଶୁଖାଇ ତାହାରି ଭିତରେ
ଦିଏ ସେ ବିପୁଳ ଦାନ
ଭାସଇ ଆକାଶେ କାଳିଆ ବାଦଲ
ଝରଇ ବରଷା ଜାଣ ।

('ସ୍ୱରାଜ୍ୟ'ରେ ପ୍ରକାଶିତ)



# ରଜ ମଉଛବ

ପହିଲି ରଜର　　　　ସକାଳୁ ସକାଳୁ
　　ସଜବାଜ ହୋଇ ସୁଖେ
ସାଥି ମେଳେ ଝିଅ　　　　ବେଳ ତା' ବିତାଏ
　　ମାଟି ଖେଳ କଉତୁକେ ।
ଶିରେ ନାଲି ଫିତା　　　　କପାଳରେ ଚିତା
　　ପାଦରେ ଅଳତା ଗାର
ଦେହେ ନୂଆ ବାସ　　　　ପାଦେ ନୂଆ ଜୋତା
　　ଗଳାରେ ଶୋଭଇ ହାର ।
କଳି ତ ନୁହଁଇ　　　　କେତେ ସଜବାଜ
　　କେତେ ଯେ ମଉଜ ରଙ୍ଗେ
ସରସ ମଧୁର　　　　ଭାବନାରେ ପରା
　　ସବୁରି ପରାଣ ହଙ୍ଗେ ।
ପୁଅ ଝିଅ ସବୁ　　　　ଦଳ ଦଳ ହୋଇ
　　ଖେଳରେ ଗଲେଣି ମାତି
ହସ ଖୁସି ଖାଲି　　　　ପଡୁଛି ଉଛୁଳି
　　ସାରା ଦିନ ସାରା ରାତି ।
ଝିଅ ବୋହୂ ମାନେ　　　　ରଜ ପାନ ଖାଇ
　　ଖେଳିଲେଣି ରଜ ଦୋଳି
ରଜ ପାଗ ଦେଖି　　　　ମନ ଫୁଲାଣିଆ
　　ଗୀତ କେ ଯାଉଛି ବୋଲି ।

ଖେଳ ସାଥେ ସାଥେ ଘରେ ଘରେ କେତେ
ମଉଜିଆ ଖିଆ ପିଆ
ସାଇ ପଡ଼ିଶାରେ ପିଠାପଣା ଆଦି
ହେଉଅଛି ଦିଆନିଆ ।
ବରଷକେ ଥରେ ରଜ ମଉଛବ
ଆସିଥାଏ ଏହିପରି
ଓଡ଼ିଆ ଜାତିର ବଡ଼ ପରବ ଏ
ଚାଲେ ତିନି ଦିନ ଧରି ।
ହରଷ ଉଛୁଳା ପରିବେଶ ଦେଖି
ଲାଗଇ ମନକୁ ସତେ
ସରଗ ସୁଖ କେ ବିତରି ଦେଇଛି
ଆସି ଏ ମରତ ପଥେ ।

(ଦୈନିକ 'ସ୍ୱରାଜ୍ୟ'ରେ ପ୍ରକାଶିତ)

❀❀❀

# ହେଉ ସିଏ ବଡ଼ ମଣିଷ

ବାଲିଘର ତୋଳି ଖେଳୁଅଛି ଯେଉଁ ଛୁଆଟି
ଯାହାପଛେ ଅବା ହୋଇଥାଉ ତା'ର ନାଆଁଟି
'ଆରେଛୁଆ' ବୋଲି ଡାକିଦେଲେ ଆସେ ଝପଟି
ଅଳି କରୁଥାଏ ଶୁଣିବାକୁ ନୂଆ ଗପଟି ।
ଖିଆପିଆ ଭୁଲି ସୁଖେ ମାତିଥାଏ ଖେଳରେ
ଭାରି ତା' ଶରଧା ବସିବାକୁ ମାଆ କୋଳରେ ।
ଆଦର ସେନେହ ପାଇବାକୁ ସଦା ଆକୁଳ
କଥାଭାଷା ତା'ର ଅତିହିଁ କୋମଳ ମଧୁର ।
ଦେବ ଶିଶୁ ସିଏ ଜାଣେ ନାହିଁ ଛଳ କପଟ
ରୁଷିଯାଏ ହେଲେ କଲେ ତାକୁ କେହି ଆକଟ ।
ତାକୁ ଦେଖି ଦେଲେ ମରମେ ଭରଇ ହରଷ
ତାହାଯୋଗୁଁ ସାରା ଧରଣୀ ଦିଶଇ ସରସ ।
ଯେଉଁ ଶିଶୁ ଆଜି ଖେଳୁଅଛି ଧୂଳି ମାଟିରେ
ଜୀବନ ତାହାର ବିତେ ନାହିଁ ଖାଲି ସେଥିରେ ।
କେତେ କେତେ ଗୁଣ ଧରି ସେ ଆସିଛି ମରତେ
ବିକଶିବ ଧୀରେ ଅଛି ଯା' ତାଠାରେ ଗୁପତେ ।
ସିଏ ତ ଗଢ଼ିବ ଆଗାମୀ ଯୁଗର ଦୁନିଆଁ
କରମେ ତାହାର ଫୁଟିବ ମହତ ପଣିଆ ।
ତାହା ପାଇଁ ସଦା ଝରିପଡ଼େ ଶୁଭ ଆଶିଷ
ସବୁରି କାମନା ହେଉ ସିଏ ବଡ଼ ମଣିଷ ।

(ମାସିକ 'କୁନିରାଇଜ'ରେ ପ୍ରକାଶିତ)



# ବୋକା ବିଲୁଆ

ବିଲୁଆଟେ ଦିନେ ମନ କଲା ଭାରି
ବାଘ ପରି ହେବା ପାଇଁ
ଭାବି ଏହି କଥା କମାର ଦୁଆରେ
ଉଭା ହେଲା ବେଗେ ଯାଇ ।
କମାରକୁ ଦେଖି କହିଲା ବିଲୁଆ
ନୁଆଁଇ ତା'ପାଦେ ମଥା
''ଦେହେ ମୋର ଦାଗ ଦିଅ ହେ ବସାଇ
ବାଘ ଦେହେ ଅଛି ଯଥା ।''
ଶୁଣି ତା' ଗୁହାରି କମାର ବାପୁଡ଼ା
ଲୁହାକୁ ତତାଇ ଖରେ
ଲାଛି ଦେଇଗଲା ଗାର କେତେ ଗୋଟି
ବିଲୁଆର ଦେହପରେ ।
ବିଲୁଆଟି ମୋଟେ ସହି ପାରିଲାନି
ତତଲା ଲୁହାର ଦାଉ
ଗଲା ତା' ପରାଣ ଆଶା ତ ପୂରଣ
ହୋଇ ନପାରିଲା ଆଉ ।

(ମୀନାବଜାର ଓ କୁନିରାଇଜରେ ପ୍ରକାଶିତ)



# ସକାଳ

ଭାରି ଭଲଲାଗେ ସକାଳ ସମୟ
ଚଉଦିଗ ଦିଶେ କେଡେ ଶୋଭାମୟ ।
ସୂରୁଯ ଆଲୋକେ ହସି ଉଠେ ମହୀ
ଶୀତଳ ପବନ ଧୀରେ ଯାଏ ବହି ।
ଚଢ଼େଇ ମଧୁରେ ଗାଏ କିବା ଗୀତ
ଶୁଣିଲେ ପରାଣ ହୁଏ ପୁଲକିତ ।
ଫୁଲ ଫୁଟି ତାର ମହକ ଛୁଟାଏ
ଫୁଲରୁ ଭଅଁର ସୁଖେ ମହୁ ଖାଏ ।
ସବୁଜ ଭୂଇଁରେ ଚରେ ଗୋରୁ ପଲ
ଚଷା ପୁଅ ବିଲେ [illegible]ରି ଚାଲେ ହଳ ।
ଯେ ଯାହା କାମରେ ଗଲେଣି ତ ଲାଗି
'ସକାଳ' ଆସିଲେ ଧରା ଉଠେ ଜାଗି ।
ପିଲାଏ ପଢ଼ାରେ ବସିଲେଣି ଯାଇ
ଠିକଣା ବେଳ ଏ ପାଠ ପଢ଼ା ପାଇଁ ।
ଆକାଶ ମରତ ଯେଉଁ ଆଡ଼େ ଦେଖ
ସତେ କି ସବୁରି ନୂଆ ରୂପ ରେଖ ।
ଜଗତ ସାଇଁ[illegible] ଏ ସବୁ ଭିଆଣ
ଭକତିରେ [illegible] କର ହେ ଧିଆନ ।

(ସ୍ୱରାଜ୍ୟରେ ପ୍ରକାଶିତ)



# ଠାକୁରେ ଭରସା ତାର

ବୁଢ଼ାଟିଏ ଏକା
ଚାଲିଛି ବାଟେ
ଦେହେ ତା' ଶକତି
ନାହିଁ ତ ମୋଟେ ।
ବାଡ଼ି ଉପରେ ସେ
ଦେଇଛି ଭରା
ଲୁଗା ଗୋଟା ଯାକ
କୋତରା ଚିରା ।
ହୁଏ କଲବଲ
ନ ଦିଶେ ଭଲ
ଝରି ପଡୁଅଛି
ଆଖିରୁ ଜଳ ।
ଦେଖିଲେ ବୟସ
ପଡୁଛି ଜଣା
ଅଶୀ ବରଷରୁ
ନୁହଁଇ ଉଣା ।
ଦୟା କଲେ କେହି
ଆହାର ପାଏ
ନୋହିଲେ ଭୋକରେ
ଦିନ ତା' ଯାଏ ।
କେତେବେଳେ ହାୟ
ପଡ଼ିବ ଢଳି
ଠାକୁରେ ତାହାର
ଭରସା ଖାଲି ।

(ସ୍ୱରାଜ୍ୟ ଓ କୁନିରାଇଜରେ ପ୍ରକାଶିତ)

# ଭାବି ଦେଖ ସାଥି ଆହେ

ସବୁରି ଦୁଆରେ ହାତ ପତାଇ ଯେ
ମାଗି ବୁଲୁଥାଏ ନିତି
ତା' ଜୀବନ କଥା ମନ ତଳେ କେବେ
ଭାବିଛ କି କହ ସାଥି ?
ତଡ଼ି ଦେଉ ଥାଅ ଦୁଆରକୁ ଗଲେ
ନ ବୁଝି ବେଦନା ତା'ର
କେତେ ଗାଳି ଅବା ନ ଦିଅ ତାହାକୁ
ରାଗେ ହୋଇ ଜରଜର ।
ପେଟଟି ତାହାର ପୋଡ଼ିଯାଏ ବୋଲି
ନ ସହି ଭୋକର ଦାଉ
ଦୁଆରେ ଦୁଆରେ ବିକଳେ କାତରେ
ମାଗି ବୁଲୁଥାଏ ସେହୁ ।
ନ ଦେଲେ ମୁଠିଏ ମନ ମାରିଦେଇ
ଫେରିଯିବ ସିନା ସିଏ
ଆହାର ବିନା ତା' ପରାଣ କି ହେବ
ଭାବି ଦେଖ ସାଥି ଆହେ !

(ମୀନାବଜାରରେ ପ୍ରକାଶିତ)



# କଇଁ ଫୁଲ

ଚାଂଦ ଯେବେ ସଂଜବେଳେ
ହସେ ଆକାଶ ତୀରେ
କଇଁ ଫୁଲଟି ଅନାଇ ରହେ
ପାଖୁଡ଼ା ମେଲି ଧୀରେ ।
ଛୁଟାଇ ଦେଇ ମଧୁର ବାସ
କୋମଳ ତା'ର ଦେହୁଁ
ପବନ ସୁଏ ହଲାଇ ମଥା
କେତେ ଯେ ନାଚେ ସେହୁ ।
ସାରା ରାତି ସେ ଚାଂଦ ସାଥେ
ଖେଳଇ ସୁଖେ ହସି
ଜୋଛନା ରୂପେ ସେନେହ ଧାରା
ଝରାଇ ଦିଏ ଶଶୀ ।
ସକାଳେ ଯେବେ ଆକାଶ କୋଳେ
ଚାଂଦ ଲୁଚି ଯାଏ
କଇଁ ଫୁଲର ମନେ କି ଆଉ
ଶରଧା ସୁଖ ଥାଏ ?
ବିଷାଦ ଭରେ ପଡ଼ଇ ଢଳି
ପାଖୁଡ଼ା ମୁଦି ଦେଇ
ତଥାପି ତା'ର ସୁଷମା ଶିରୀ
ପାରେନି ଭୁଲି କେହି ।

+ + + +

କିଏ ଗୋ ଫୁଲ ଗଢ଼ିଚି ତୋତେ
କହ ସେ ରହେ କାହିଁ ?
କେଡ଼େ ନିପୁଣ ଶିଳ୍ପୀ ଜଣେ
ତୁଳନା ତା'ର ନାହିଁ ।
ହେ ଫୁଲ ତୋତେ ଦେଖେ ମୁଁ ଯେବେ
ମନ ମୋ ନାଚି ଉଠେ
ଫୁଟାଇବାକୁ ତୋ ରୂପ ଗୁଣ
ଲେଖନୀ ମୋର ଛୁଟେ ।

(ମୀନାବଜାର ଓ ସ୍ୱରାଜ୍ୟରେ ପ୍ରକାଶିତ)



# ଗାଈ

ଖାଇବାକୁ ଗାଈ ଭଲ ପାଏ ବେଶି
କଅଁଳ ସବୁଜ ଘାସ
ଖାଏ କୁଟା ପାଳ ପିଏ ପାଣି ପେଜ
ଗୁହାଳେ କରଇ ବାସ ।
ଶିଙ୍ଗ ଦିଓଟି କେଡ଼େ ସୁନ୍ଦର
ଦିଶଇ ତା' ମଥାପରେ
ଲାଙ୍ଗୁଳଟିକୁ ହଲାଇ ହଲାଇ
ମଶା ମାଛି ଦୂର କରେ ।
ବାଛୁରୀ ଦେହକୁ ଚାଟି ଦେଉଥାଏ
ଗଭୀର ମମତା ଢାଳି
ହମ୍ବାଳ ଛାଡ଼ି ପାଶେ ଡାକି ଆଣେ
ଦୂରକୁ ଗଲେ ସେ ଚାଲି ।
ଗାଈଟି ଆମର ଭାରି ଉପକାରୀ
ବୋଲାଏ ଗୋଧନ ସିଏ
ଜଗତର ହିତେ ପହ୍ନାରୁ ତାର
ସୁଧା ସମ କ୍ଷୀର ଦିଏ ।
ଚାଷ ଜମି ଲାଗି ଭାରି ଭଲ ସାର
ଗାଈର ଗୋବର ମୂତ
ଗୋବର ଲିପାରେ ଦୁଆର ଅଗଣା
ଦିଶେ କେଡ଼େ ଶୁଚି ପୂତ !
ପୋଥି ପୁରାଣରେ ଲେଖା ଅଛି ବହୁ
ଗାଈର କୀରତି ଗାଥା
ଆମେ ପୂଜା କରୁ ସେବା କରୁ ତା'ର
ସିଏ ପରା ଗୋରୁ ମାତା ।

(ସ୍ୱରାଜ୍ୟରେ ପ୍ରକାଶିତ)

# ଥରିଲି ଭୟେ ମୁହିଁ

ଘଣ୍ଟାରେ ଯେବେ ବାଜିଲା ବାର
ପାଠ ପଢ଼ାକୁ ସାରିଲି ମୋର
ଅଧିକ ହେଲା ରାତି

ପଢ଼ା କଥାକୁ ମନରେ ଭାଳି
ଖଟ ଉପରେ ଗଲି ମୁଁ ଢଳି
ଲିଭାଇ ଦେଇ ବତି ।

ନ ହେଲା ନିଦ ଜମାରୁ ମୋତେ
ହରକତିଆ ହେଲି ଯେ କେତେ
ନିଦକୁ ଚାହିଁ ଚାହିଁ

ମନରେ ମୋର ପଶିଲା ଭୟ
ରାତିଟା ଆଜି ସତେ କି ହାୟ
ଏମିତି ଯିବ ପାହି !

ଜାଣିପାରି ମୋ ଦଶାକୁ କେହି
କରୁଣା ଭାବ ମନରେ ବହି
ଆସିଲା ପାଶେ ଧାଇଁ

ଘଷିବ ବୋଲି ପାଦକୁ ମୋର
ବଢ଼ାଇ ଦେଲା ହାତକୁ ତା'ର
ଚମକି ଗଲି ମୁହିଁ ।

ଖଟ ଉପରୁ ଡିଅାଁଟେ ମାରି
ପଡ଼ିଲି ତଳେ ମୁହଁକୁ ମାଡ଼ି
ଉଠି ଜାକିଲି ବତି

ପାଦକୁ ତହୁଁ ଦେଖିଲି ଚାହିଁ
ରକତ ଧୀରେ ଯାଉଛି ବହି
ପୋଡୁଛି ତାହା ଅତି ।

ଏତିକି ବେଳେ ବିଲେଇ ଗୋଟେ
ଘର ଭିତରୁ ଝରକା ବାଟେ
ପଳାଇ ଗଲା ଧାଇଁ

ଭାବିଲି ମନେ କି ହେଲା ସତେ
ପରଶେ ଯାର ଘଟିଲା ଏତେ
ଘଷିଥିଲେ ସେ ପାଦକୁ ମୋର
ହୋଇଥାନ୍ତା କି ବିପଦ ଘୋର
ଥରିଲି ଭୟେ ମୁହିଁ ।

('ମୀନାବଜାର'ରେ ପ୍ରକାଶିତ)



# କାହାର କାହାକୁ ଭୟ ?

ଦାନ୍ତଙ୍କୁ ଦିନେ କହିଲା ଜିଭ
"ଶୁଣ ହେ ଭାଇମାନେ
ସଭିଏଁ ମିଶି ବତିଶି ଅଛ
ମୁହିଁ କେବଳ ଜଣେ ।
ପଥର ପରି କଠୋର ତୁମେ
କୋମଳ ଅତି ମୁହିଁ
ତୁମ ଭିତରେ ହେଉଛି ମୋତେ
ସଦା ରହିବା ପାଇଁ ।
ଡରି ଡରି ମୁଁ କାଟୁଛି କାଳ
ତୁମ ମଝିରେ ଥାଇ
ଯଦି ବା କେବେ କାମୁଡ଼ି ଦେବ
ରକ୍ଷା ମୋହର ନାହିଁ ।"
ଜିଭକୁ ତହୁଁ ଜବାବ ଦେଇ
କହିଲେ ଦାନ୍ତ ଯାକ
"ଭଉଣୀ ଆଲୋ କହିଲୁ ଯାହା
ତୋ କଥା ସବୁ ଠିକ ।
ତଥାପି ଆମେ କହୁଛୁ ଯାହା
ଶୁଣ ତୁ ଦେଇ ମନ
ଗୋଟିଏ ଘଣ୍ଟେ ହେଲେହେଁ ଆଲୋ
ବଳ ତୋ ଅକଳନ ।

ସଂଖ୍ୟାରେ ସିନା ବତିଶି ଆମେ
ସାହା ଭରସା ହୀନ
ଡରି ଡରିକା ତୋହରି ପାଖେ
କାଟୁଛୁ ରାତି ଦିନ ।
କହି ଦେବୁ ତୁ କାହାକୁ ଯେବେ
ଅଡୁଆ କଥା କାଳେ
ଆସି ଯିବ ସେ ପାଶକୁ ଧାଇଁ
ଯେମିତି ରୋଷ ଭରେ
ଯିବୁ ତୁ ଲୁଚି ଆମରି ପଛେ
କିଛି ନ କଲା ପରି
ଗୋଟି ଗୋଟି ସେ ହୁଗାଳି ଦେବ
ଖୁନ୍ଦା-ଚାପୁଡ଼ା ମାରି !!"

(ମାସିକ 'ଟୁଆଁଟୁଇଁ'ରେ ପ୍ରକାଶିତ)



# ଆପଣା ଫାନ୍ଦରେ ପଡ଼ିଲା ଆପେ

ଦିନେ ବଇଶାଖ          ଦୁଇ ପହରିଆ
ମୁଣ୍ଡ ଫଟା ଖରାବେଳେ
ଗଉଡ଼ ବାପୁଡ଼ା          କ୍ଷୀର ଭାର ବହି
ଯାଉଁ ଯାଉଁ ପଥ ଧାରେ
ଅଟକି ସେ କେଉଁ          ନାଗୁଆ ଦୁଆରେ
ଡାକ ଦେଲା ପାଟି କରି
''ନିତିଆନି ବେଗେ          ନେଇଯାଅ ମାଆ
ହେଲାଣି ବହୁତ ଡେରି ।''
ଜାଗା ନେଇ ମାଆ          ବାହାରକୁ ଗଲେ
ଗଉଡ଼ର ଡାକ ଶୁଣି
ଦେଖି ଦେଇ କ୍ଷୀର          ଜାଣିଲେ ତକ୍ଷଣେ
ମିଶିଛି ଅଧିକ ପାଣି ।
ପଚାରିଲେ ତାକୁ          ନିତିଆନି କିଆଁ
ହୋଇଛି ପାଣିଆ ଏତେ
ତା' ଶୁଣି ଗୋପାଳ          କଥା ଫାନ୍ଦିକରି
କହିଦେଲା ଏହିମତେ -
''ଖରାଦିନ ଏବେ          ଜାଣ ନି କି ମାଆ
ଗାଈ ଗୁଡା ଶୋଷୀ ଭାରି
ଘାସ କୁଣ୍ଡା କିଛି          ଖାଉ ତ ନାହାନ୍ତି
ପିଉଛନ୍ତି ପାଣି ଖାଲି ।

ଏଥି ପାଇଁ କ୍ଷୀର ପତଳା ହୋଇଛି
ଆଉ କିଛି କଥା ନୁହଁ
ଦୁଆରେ ତୁମର ନିତି ଦେଉଅଛି
କି ଲାଗି ଠକିବି କୁହ ?''
ଗଉଡ଼ର ଫନ୍ଦି ବୁଝିଗଲେ ମାଆ
ବୋଇଲେ ତାକୁ ସେ ତହୁଁ
''ଗାଈ ପିଛା ତୋର ଖରଚ କିଛି ହିଁ
ନୋହୁଛି ତ ମୋତେ ଆଉ ।
କିଲେ କ୍ଷୀର ପାଇଁ ଆଠ ଟଙ୍କା ନେଉ
ନ ଦେବି ଏଥର ସେତେ
ପାଣିଆ କ୍ଷୀରର ଠିକଣା ପଇସା
ଟଙ୍କାଏ ଦେବି ମୁଁ ତୋତେ ।''
ଗଉଡ଼ ପୁଅର ବୁଦ୍ଧି ହେଲା ବଣା
ଦୋଷ ତା'ର ଗଲା ମାନି
କହିଲା ''ଏଣିକି କ୍ଷୀରରେ କେବେହେଁ
ମିଶାଇବି ନାହିଁ ପାଣି ।''

('ସ୍ୱରାଜ୍ୟ'ରେ ପ୍ରକାଶିତ)



# ବୁଢ଼ୀ ଓ ଦାଢ଼ି

ପଢ଼ି ଦେଇ ଆଗ କବିତାର ନାମ
ତୁମେ ହେଉଥିବ ଭାଳି
'ଏ କି ଅଘଟଣ ବୁଢ଼ୀଟାର ପୁଣି
ଆସିଲା କୁଆଡୁ ଦାଢ଼ି !'
ମନ ଥୟକରି କବିତାକୁ ପୂରା
ଥରେ ପଢ଼ିଦେଇ ଗଲେ
କଥାଟା ନୁହଁଇ ବିପରୀତ ବୋଲି
ତୁମେ ଜାଣିଯିବ ବଳେ ।
ବୁଢ଼ୀଟିଏ ତା'ର ବୟସ ଅଧିକ
ନାହିଁ ଦେହେ ମୋଟେ ବଳ
ଦାଣ୍ଡ ପିଣ୍ଡାପରେ ବସେ ଆସି ଧୀରେ
ଲାଗେ ଯଦି ଟିକେ ଭଲ ।
ଏତେବେଳେ ପାଖ ପଡ଼ିଶା ଘରରୁ
ବାଡ଼ିଟିକୁ ଧରି ହାତେ
ବୁଢ଼ାଟିଏ ନିତି ଆସି ପହଞ୍ଚଇ
ଗପିବାକୁ ବୁଢ଼ୀ ସାଥେ ।
ଗୋଟେ ବୋଲି ଦାନ୍ତ ନାହିଁ ସେ ବୁଢ଼ାର
ରଖିଅଛି ଲମ୍ବା ଦାଢ଼ି
ଗପିବାରେ ତା'ର ଶରଧା ବହୁତ
ସହଜେ ଯାଏନି ଛାଡ଼ି ।

ବିଚାରୀ ବୁଢ଼ୀଟି ରୋଗ ଭୋଗି ଭୋଗି
ହେଉଥାଏ କଲବଲ
ସିଏ ତ ଜମାରୁ ଗପି ପାରେ ନାହିଁ
ଚାହିଁ ରହେ ବଲ ବଲ ।
ଦିନକ ଭିତରେ ଥରେ ହେଲେ ବି ତ
ଭେଟ ହୁଏ ଏହିପରି
ବୟସର ବୋଝେ ଦୁହେଁ ଟଳ ଟଳ
ଦିନ ଆସିଲାଣି ସରି ।
ବୁଢ଼ା ଓ ବୁଢ଼ୀକୁ ଏକାଠି ଦେଖିଲେ
ପିଲାଏ ହସନ୍ତି ଖାଲି
ଦାଢ଼ିଆ ବୁଢ଼ାକୁ 'ଦାଢ଼ି' ବୋଲି କହି
ସୁଖେ ମାରୁଥାନ୍ତି ତାଳି ।

('ସ୍ୱରାଜ୍ୟ'ରେ ପ୍ରକାଶିତ)

# ଜହ୍ନମାମୁଁ

ଲୁଚକାଳି ଖେଳି ବଉଦ ସାଥିରେ
ଢଳି ଢଳି ଚାନ୍ଦ ଆସୁଅଛି ଧୀରେ ।
ସୁକୁମାର ଶିଶୁ ବସି ଆଈ କୋଳେ
ଡାକୁଥାଏ ତାକୁ କି ଆନନ୍ଦ ଭୋଳେ !
ପାଖୁଡ଼ା-ଆଖିକୁ ମେଲି ଦେଇ କଇଁ
ଚାନ୍ଦର ସୁନ୍ଦର ମୁଖକୁ ଦେଖଇ ।
ଝରାଇ ଦେଇ ତା' ଜୋଛନାର ଧାରା
ଜହ୍ନମାମୁଁ କେତେ ଖେଳେ ରାତି ସାରା ।
ଭରଇ ପୁଲକ ପରାଣେ ପରାଣେ
ସଭିଏଁ ବିଭୋର ତା' କୀରତି ଗାନେ ।
ଭାସିଯାଇ ତା'ର ଆଲୋକ-ଢେଉରେ
ଧରା ରାଣୀ ସତେ ହସଇ ମଧୁରେ ।
\+ + + + + +
ହେ ଚାନ୍ଦ ତୋହର ଶୋଭା ଅତୁଳନ
ସହଜେ ସବୁରି ହରି ନେଉ ମନ ।
ସେ କେଉଁ ବିନ୍ଧାଣି କେତେ କାଳ ବସି
ଗଢ଼ି ଅଛି ତୋତେ କି ଶିରୀ ପରଷି ?

('ମୀନାବଜାର'ରେ ପ୍ରକାଶିତ)

# ଗୁଡ଼ିଆ ଭାଇ

ପିଠା ଗଢ଼ି ନିତି
ଗୁଡ଼ିଆ ଭାଇ
ବିକୁଥାଏ ବୁଲି
ସାଇରୁ ସାଇ ।
ଆସିଗଲେ ସିଏ
ପସରା ବହି
ପିଲାଙ୍କ ହରଷ
ନ ହୁଏ କହି ।
ଭୋଗେଇ ଚାଙ୍ଗୁଡ଼ି
ନେଇ ତା' ପାଶେ
ବେଢ଼ି ଯାଇଥାନ୍ତି
କିଣିବା ଆଶେ ।
ପେଡ଼ା ଲଡୁ ମୁଢ଼ି
ଉଖୁଡ଼ା ଖଜା
ଖାଇଲେ ଲାଗଇ
ବଢ଼ିଆ ମଜା ।
ସାରା ଦିନ ବୁଲି
ବିକି ସେ ଚାଲେ
ପାଏ ଯା' ତହିଁରେ
କୁଟୁମ୍ବ ପାଳେ ।
ନିଜ ଅଧୀନରେ
ଜୀବିକା ତା'ର
ଚାଲିଚି ଯତନେ
ମୁଣ୍ଡାଇ ଭାର ।

(ଶିଶୁ ରାଇଜ ଓ ଶିଶୁ ଜଗତରେ ପ୍ରକାଶିତ)